# ଗୀତିନାଟ୍ୟ

# ଶ୍ରୀତା ନୂଅ କୁଣି

ଗୋପାଳ ଛୋଟରାୟ



ପ୍ରକାଶକ : ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨
ଗ୍ରନ୍ଥମନ୍ଦିର, ମେନ୍‌ରୋଡ଼, ବ୍ରହ୍ମପୁର-୧

ମୁଦ୍ରକ : ଜୟରାମ ମହାପାତ୍ର
ଗ୍ରନ୍ଥପ୍ରକାଶିନୀ, ସୂତାହାଟ, କଟକ

ପ୍ରଥମ ମୁଦ୍ରଣ : ଫେବୃଆରୀ, ୧୯୮୫

ମୂଲ୍ୟ : ଟ ୪-୦୦

[ ବାଲ୍ମୀକ ତପୋବନ । ଉପସ୍ଥିତ
ବାଲ୍ମୀକ, ସୀତା ଓ ଲବକୁଶ ।]

ବାଲ୍ମୀକ—ଆମ ଅଯୋଧ୍ୟା ଯାତ୍ରାର ସମୟ ହୋଇଗଲା ଲବକୁଶ ।
ମାତାଙ୍କ ଚରଣ ବନ୍ଦନା କରି ତାଙ୍କଠୁଁ ବିଦାୟ ନେଇ ଆସ ।

ଲବ
କୁଶ } —ଆମକୁ ବିଦାୟ ଦିଅ ମାତ !

ସୀତା—ଆଶୀର୍ବାଦ କରୁଛି ବତ୍ସ ···(ରୁଦ୍ଧକଣ୍ଠରେ) ଆଶୀର୍ବାଦ କରୁଛି—ଅଯୋଧ୍ୟାପୁରୀରେ ବାଲ୍ମୀକ ତପୋବନର ସୁନାମ ରକ୍ଷାକରି ତୁମେ ଦୁହେଁ ସର୍ବଶୁଭରେ ଫେରିଆସିବ ।

ବାଲ୍ମୀକ—କଣ ହେଲା ମା' ଜାନକୀ ? କଣ୍ଠ ତୋର ରୁଦ୍ଧ ହୋଇ ଆସୁଛି—ଆଖି ଲୁହ ଛଳଛଳ !

ସୀତା—ରଘୁପତି ଯଜ୍ଞ କରୁଚନ୍ତି—ଅଶ୍ୱମେଧ ଯଜ୍ଞ । ରାଜା ମହାରାଜା ଋଷି ମୁନିଙ୍କ ମେଳରେ ଅଯୋଧ୍ୟାର ଯଜ୍ଞପୀଠ ହସିଉଠୁଥିବ । ଆଉ ସେଇ ଯଜ୍ଞ ସଭାକୁ ଯିବେ ରଘୁବଂଶ ଅବତଂଶ ରାଜା ରାମଚନ୍ଦ୍ରଙ୍କର ଏ ଦୁଇ କୁଳପ୍ରଦୀପ—ମାତ୍ର ଦୁଇଜଣ ସାମାନ୍ୟ ଦର୍ଶକ ହୋଇ !

ବାଲ୍ମୀକ—ଛି, ମା ! ତୋ ମନରେ ପୁଣି ଏ ଦୁର୍ବଳତା ସ୍ଥାନ ପାଉଚି !···ଆଉ, କଏ ଚିହ୍ନେ କହିଲା ତୋର ପୁତ୍ର ଦୁହେଁ

ସେଠିକି କେବଳ ଦର୍ଶକ ହୋଇ ଯାଉଛନ୍ତି !! ମୋର ପ୍ରିୟ ଶିଷ୍ୟ ଦୁହେଁ ସେଠି ରାମାୟଣ ଗାନ କରିବେ । ଲବକୁଶଙ୍କ ସୁଲଳିତ କଣ୍ଠ ସ୍ୱରରେ ଅଯୋଧ୍ୟାବାସୀଙ୍କ ମନ କର୍ଣ୍ଣ ତୃପ୍ତ ହୋଇଉଠିବ । ସମସ୍ତେ ଧନ୍ୟ ଧନ୍ୟ କହିବେ । ଦେ ମା, ଏଥର ହସି ହସି ଆମକୁ ବିଦାୟ ଦେ ।

କୁଶ—ଯଦି ରଘୁପତି ଆମର ପରିଚୟ ଜାଣିବାକୁ ଚାହାନ୍ତି ?

ବାଲ୍ମୀକି—ପରିଚୟ !! ଠିକ୍ କଥା । କହ ମା' ଜାନକୀ—ତୁ କହ, ତୋର ପୁଅ ଦୁହେଁ ଅଯୋଧ୍ୟା ରାଜସଭାରେ ତାଙ୍କର କି ପରିଚୟ ଦେବେ ?

ସୀତା—ଯଦି ପ୍ରଭୁ ରଘୁକୁଳସାଇଁ ତମର ପରିଚୟ ଚାହାନ୍ତି— ତେବେ ତାଙ୍କୁ କହିବ···

ଲବ—ଅଟକି ଗଲ କାହିଁକି ? କୁହ ମା' କଣ ତାଙ୍କୁ କହିବୁ ?

ସୀତା— (ଗୀତ)

ଯୋଡ଼ ହସ୍ତ ହୋଇ ତାଙ୍କୁ କହିବ ବୁଝାଇ
ବାଲ୍ମୀକି ମୁନିଙ୍କ ଶିଷ୍ୟ ଆମେ ଦୁଇ ଭାଇ । ୦ ।
ଆଶ୍ରମ ବାଳକ ଆମେ
ମାତୃ ସ୍ନେହେ ଗଢ଼ା ଆମେ
ଅନ୍ୟ ପରିଚୟେ କିଛି ପ୍ରୟୋଜନ ନାହିଁ
ବାଲ୍ମୀକି ମୁନିଙ୍କ ଶିଷ୍ୟ ଆମେ ଦୁଇ ଭାଇ । ୧ ।

ବାଲ୍ମୀକି—ଠିକ୍ କହିଚୁ ମା' । ଯାହା ଏମାନଙ୍କର ପ୍ରକୃତ ପରିଚୟ ସେ କଥା ପ୍ରକାଶ କରିବାର ସମୟ ଏପର୍ଯ୍ୟନ୍ତ ଆସିନାହିଁ ।

କୁଶ—ଆମକୁ ଏବେ ବିଦାୟ ଦିଅ ମା' ।

ସୀତା—ଯାଅ ଲବକୁଶ ! ଗୁରୁଦେବଙ୍କ ଆଜ୍ଞା ପାଳନରେ ଯେପରି ଟିକେ ହେଲେ ତ୍ରୁଟି ନ ଘଟେ—ଯାଅ ।

[ ଅଯୋଧ୍ୟାର ଯଜ୍ଞସ୍ଥଳୀ । ବାଲ୍ମୀକି ଓ ଲବକୁଶ ଆସିଲେ ]

ବାଲ୍ମୀକି—ରଘୁକୁଳପତି ରାଜା ରାମଚନ୍ଦ୍ରଙ୍କର ଜୟହେଉ ।

ରାମ—ଆସନ୍ତୁ—ଆସନ୍ତୁ ମହର୍ଷି ବାଲ୍ମୀକି । ମୋର ମହାଭାଗ୍ୟ, ଆପଣ ଯଜ୍ଞସ୍ଥଳୀରେ ପଦାର୍ପଣ କରିଛନ୍ତି ।

ଲବ }
କୁଶ } —ସୀତାପତି ରାଜା ରାମଚନ୍ଦ୍ରଙ୍କ ଚରଣକମଳରେ ଆମେ ପ୍ରଣତି ଜଣା କରୁଛୁ ।

ରାମ—(ସ୍ୱଗତ) ସୀତାପତି ରାଜା ରାମଚନ୍ଦ୍ର !! ସୀତାପତି !!…

ବାଲ୍ମୀକି—କଣ ଭାବୁଚନ୍ତି ଅଯୋଧ୍ୟା ଈଶ୍ୱର ? ଚିହ୍ନିପାରୁନାହାନ୍ତି ଏମାନଙ୍କୁ ? ଏ ବାଳକ ଦୁହେଁ ମୋର ଆଶ୍ରମବାସୀ ଶିଷ୍ୟ ।

ରାମ—(ସ୍ୱଗତ) ଆଶ୍ରମବାସୀ ବାଳକ !! ବଲ୍କଳ କୌପୀନ ପରିବର୍ତ୍ତେ ରାଜପୋଷାକ ପିନ୍ଧିଲେ କିଏ କହିବ ଏମାନେ ରାଜପୁତ୍ର ନୁହନ୍ତି !!…କିନ୍ତୁ…କିନ୍ତୁ କାହାର ପୁତ୍ର ଏମାନେ ? କିଏ ସେ ଭାଗ୍ୟବାନ୍ ରାଜା ?

ବାଲ୍ମୀକି—ଅଶ୍ୱମେଧ ଯଜ୍ଞର ଆନନ୍ଦ ଉତ୍ସବ ମଧ୍ୟରେ ରଘୁପତି ଯେପରି ବିଚଳିତ ଜଣାପଡ଼ୁଛନ୍ତି !

ରାମ—ଏଁ !! ନା···ନା···! ମୁଁ ଆଶୀର୍ବାଦ କରୁଛି ମୁନିକୁମାର—ତୁମେ ଦୁହେଁ ଯାଗ, ଯୋଗ, ଶୌର୍ଯ୍ୟ, ବୀର୍ଯ୍ୟ, ବିଦ୍ୟା, ବୁଦ୍ଧି ସବୁଥିରେ ଅପାର ସିଦ୍ଧି ସାଧନକରି ତ୍ରିଭୁବନରେ ଯଶ କୀର୍ତ୍ତି ଲାଭକର ।···ହଁ ମହର୍ଷି—

ବାଲ୍ମୀକ—କୁହନ୍ତୁ ଅଯୋଧ୍ୟାପତି !

ରାମ—ଆପଣଙ୍କ···ଆପଣଙ୍କ ଆଶ୍ରମ··(କଣ୍ଠରୁଦ୍ଧ)

ବାଲ୍ମୀକ—କୁହନ୍ତୁ···

ରାମ—ଆଶ୍ରମର ସବୁ ଶୁଭ···ସବୁ ମଙ୍ଗଳ ତ ?

ବାଲ୍ମୀକ—ଆପଣ ରାଜା ରାମଚନ୍ଦ୍ର—ଆପଣଙ୍କ ଆଦର୍ଶ ହେଲା ପ୍ରଜାର ଶୁଭ ଚିନ୍ତା—ମଙ୍ଗଳ ଚିନ୍ତା ।···ଆମେ ଆଶ୍ରମବାସୀ ଏ ସୌଭାଗ୍ୟରୁ ବଞ୍ଚିତ ହେବୁ କାହିଁକି ?

ଲବ—ମଙ୍ଗଳ ଆରତିର ଆରାଧନାରେ ହୁଏ ଆମ ଆଶ୍ରମରେ ପ୍ରଭାତ ।

କୁଶ—ସନ୍ଧ୍ୟା ହୁଏ ଶୁଭ ପ୍ରଦୀପର ଆଲୋକ ଶିଖାରେ ।

ରାମ—ଶୁଣି ତୃପ୍ତହେଲି ବତ୍ସ !···ହଁ, କୁଳଗୁରୁ ବଶିଷ୍ଠ, ମହର୍ଷି ଆଉ କୁମାର ଦୁହିଁଙ୍କ ବିଶ୍ରାମ···

ବଶିଷ୍ଠ—ସେ ସମସ୍ତ ବ୍ୟବସ୍ଥା କୁମାର ଭରତ କରିଚନ୍ତି ।

ଭରତ—ହଁ, ସବୁ ବ୍ୟବସ୍ଥା ହୋଇଛି । ଆସନ୍ତୁ ମହର୍ଷି—ଆସ କୁମାର ।

[ ଯଜ୍ଞସ୍ଥଳୀର ବିଶ୍ରାମ କୁଟୀର ]

ବାଲ୍ମୀକ—ପ୍ରସ୍ତୁତ ହୋଇଛ ଲବକୁଶ !

ଲବ—ଆମେ ପ୍ରସ୍ତୁତ ଗୁରୁଦେବ !

ବାଲ୍ମୀକ—ଏବେ ତୁହେଁ ଯାଅ—ପଥଧାରରେ ବସି ରାମାୟଣ
ଗାନକର । ମୁଁ ଯାହା ଯାହା ନିର୍ଦ୍ଦେଶ ଦେଇଛି···

କୁଶ—ଆମେ ଅକ୍ଷରେ ଅକ୍ଷରେ ପାଳନ କରିବୁ ।

ବାଲ୍ମୀକ—ଯାଅ ।

[ ପଥଧାରରେ ବସି ଲବକୁଶ
ରାମାୟଣ ଗାନକରୁଛନ୍ତି ]

ଲବ }
କୁଶ } —(ଗୀତ)

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ମହେଶ୍ୱର
ଆଦ୍ୟରେ ବନ୍ଦିଲୁ ଆମେ ଶ୍ରୀଗୁରୁ ପୟର ॥
ତାପରେ ବନ୍ଦିଲୁ ହମେ ସର୍ବ ଦେବପାଦ
ସଭାଜନେ ବନ୍ଦ ଏବେ ଆରମ୍ଭିଲୁ ପଦ ॥

ଲବ—ଦଶରଥ ଅଯୋଧ୍ୟାର ନରେଶ
ପାଚ ମନ୍ତ୍ରୀଙ୍କୁ ଦିଅନ୍ତିଲେ ଆଦେଶ ।

କୁଶ—ପୁତ୍ର ଲଭ ଅର୍ଥେ ଯଜ୍ଞ କରବ
ସବୁ ଦେବତା ବ୍ରାହ୍ମଣେ ବରବ ।

ଲବ—ଋଷ୍ୟଶୃଙ୍ଗ ମୁନ ତହୁଁ ଆସିଲେ
ହୋମ ପାଦଦେଶେ ଇନ୍ଦ୍ର ବର୍ଷିଲେ ।

କୁଶ—ହୋମ ଅଗ୍ନିରୁ ଯେ ଚରୁ ଉତ୍ପନ୍ନ
ତନ ରାଣୀ ତା କରଲେ ଭକ୍ଷଣ ।

ଲବ—ଦେଖ ବଧାତା ପୁରୁଷ ଭଆଣ
ତନରାଣୀଙ୍କର ଗର୍ଭ ଧାରଣ ।

କୁଶ—ଦଶମାସ ଅବସାନ ହୋଇଲ
ରାଜପୁରେ ଶୁଭ ବାଦ୍ୟ ବାଜଲ ।

ଲବ—ଜାତ କୋଉଶଲ୍ୟା ଗର୍ଭୁ ଶ୍ରୀରାମ
ଭରତ ଯେ କଇକେୟୀ ସନ୍ତାନ ।

କୁଶ—ସୁମିତ୍ରାଙ୍କ ଗର୍ଭୁ ହେଲେ ଜନମ
ଦୁଇ ଭାଇ ସେ ଲକ୍ଷ୍ମଣ ଶତ୍ରୁଘ୍ନ ।

ଲବ—କାଳେ ସବୁ ପୁତ୍ର ବଦ୍ୟା ଶିଖିଲେ
କୁଶ—ଧନୁ ବଦ୍ୟାରେ ପାରଙ୍ଗ ହୋଇଲେ ।

ଜଣେ ଦର୍ଶକ—ପଥଧାରରେ ବସି ପିଲ ଦୁଇଟି କି ସୁନ୍ଦର ରାମାୟଣ ଗାନ କରୁଚନ୍ତି ।

ଅନ୍ୟଜଣେ—ଚୁପ୍—ଖେଦା ଓଲଟାଉଛନ୍ତି । ଆଉ ଗୋଟିଏ ନୂଆ-ସର୍ଗ ଆରମ୍ଭ କରବେ କି କଣ ।

[ପରିପୂର୍ଣ୍ଣ ରାଜସଭା]

ରାମ—ସେମାନଙ୍କ ନିକଟକୁ ଦୂତ ପଠାହୋଇଛି ଭରତ ?

ଭରତ—ପଠାହୋଇଛି ଭ୍ରାତୃଦେବ ! ସେ ଦୁହେଁ ଏଠିକି ଆସି ଆପଣଙ୍କ ସମ୍ମୁଖରେ ରାମାୟଣ ଗାନ କରିବେ ।

ରାମ—ଶୁଣିଲି କିଶୋର ବାଳକ ଦୁଇଟି ରାମାୟଣ ଗାନରେ ସମସ୍ତଙ୍କୁ ମୁଗ୍ଧ କରୁଚନ୍ତି ।

ଭରତ—ରାମାୟଣ ଗାନ ଶୁଣି ବଣିକର ବଣିଜ ବନ୍ଦ ହୋଇ ଯାଉଚି । ଗୃହିଣୀ ଗୃହକର୍ମ ଛାଡ଼ି ପଥଧାରକୁ ଚାଲିଆସୁଛି · · ଏଇତ ସେମାନେ ଆସିଲେଣି ।

(ଲବକୁଶ ଆସିଲେ)

ଲବ } କୁଶ } —ଅଯୋଧ୍ୟା ନରପତିଙ୍କର ଜୟହେଉ ।

ରାମ—ହାତରେ ତମର ସେ କି ଗ୍ରନ୍ଥ ?

ଲବ—ରାମାୟଣ—ଗୁରୁଦେବ ବାଲ୍ମୀକଙ୍କ ରଚନା ।

ରାମ—ଏଠି ରାମାୟଣ ଗାନ ଶୁଣାଇବାରେ ତମର ଆପତ୍ତି ନାହିଁ ତ ?

କୁଶ—ଶୁଣାଇପାରିଲେ ଆମେ ଧନ୍ୟ ହେବୁ । ଅନୁମତି ଦିଅନ୍ତୁ ।

ରାମ—ଅନୁମତି ଦେଲି ବାଳକ । ଏ ଅଯୋଧ୍ୟା ରାଜସଭାରେ ରାମାୟଣ ଗାନ କର । ଆଜ· · ·

(ରାଜସଭାରେ ଗୁଞ୍ଜନ)

ଲବ }
କୁଶ } —ଅଯୋଧ୍ୟା ରାଜସଭାର ସଭାଜନଙ୍କୁ ବନ୍ଦନା କରି ଆମେ
ରାମାୟଣ ଗାନ ଆରମ୍ଭ କରୁଛୁ ।

ବଶିଷ୍ଠ—କି ସୁନ୍ଦର ରୂପ, କି ତେଜ, ପୁଣି କି ବିନୟ ଭାବ !!

(ରାମାୟଣ ଗାନ)

ଲବ—କିଛି କାଳ ଅନ୍ତେ ବିଶ୍ୱାମିତ୍ର ମୁନିବର
ପ୍ରବେଶ ହୋଇଲେ ଯାଇ ଅଯୋଧ୍ୟା ନଗର ।
ଦେଖି ଦଶରଥ ପୂଜା ବିଧିମାନ କଲେ
କି କାରଣେ ଆଗମନ ବିନୟେ ପୁଛିଲେ ॥

କୁଶ—ଏହା ଶୁଣି ବିଶ୍ୱାମିତ୍ର କହନ୍ତି ଉତ୍ତର
ଯାଗ ଆରମ୍ଭିଲୁ କଉଶିକ ନଦୀ ତୀର ।
ଦୈତ୍ୟଗଣ ତହିଁ କରୁଛନ୍ତି ଉପଦ୍ରବ
ଶ୍ରୀରାମ ଲକ୍ଷ୍ମଣ ନେବି ଯାଗ ରକ୍ଷା ହେବ ।

ଲବ—ମୁନି ସଙ୍ଗେ ଦୁଇ ଭାଇ ଅରଣ୍ୟେ ଗମିଲେ
ତାଡ଼କା ସୁବାହୁ ଆଦି ଦୈତ୍ୟଙ୍କୁ ବଧିଲେ ।

କୁଶ—ପାଷାଣ ରୂପରେ ଥିଲ ଅହଲ୍ୟା ସୁନ୍ଦରୀ
ପାଦ ସ୍ପର୍ଶେ ରାମ ତାଙ୍କୁ ଶାପରୁ ଉଦ୍ଧାରି ।

ଲବ—ମିଥିଳାକୁ ଯିବା ଲଗି ଯାତ୍ରା ଆରମ୍ଭିଲେ
ଭାଗୀରଥି କୂଳେ ଯାଇ ପ୍ରବେଶ ହୋଇଲେ ॥

ସ୍ୱର—ଆହା !

ଲବ } — (ରାମାୟଣ ଗାନ)
କୁଶ }

ମୁନି ବୋଲନ୍ତି ଶ୍ରୀରାମ ହେ,
ଏ'ତ ସାଗର ସଙ୍ଗମ
ଚତୁର୍ଦ୍ଦିଗ ଲୋକେ ବର୍ଣ୍ଣାଅ ହୋଇଛି ପତିତପାବନ ନାମ । ୧ ।
ଭଗୀରଥ ତପବଳେ ହେ
ବିଜେକଲେ ଜଳେଜଳେ
ସାଗର ପୁତ୍ରଙ୍କୁ ମୁକତି ସେ ଦେଲେ ସାଗର ସଂଗମ ମେଳେ । ୨ ।
ଏ ବିଷ୍ଣୁ ଚରଣ ନୀର ହେ
ଅଭିଷେକ ଶିବ ଶିର
ଜାହ୍ନବୀ ସାଗର ତୁମରି ବଂଶର ଏ କରନ୍ତି ରଘୁବୀର । ୩ ।
ଏକସ୍ୱର—ରଘୁବଂଶର ଅମର କୀର୍ତ୍ତି ଗାଥା ।
(ରାମାୟଣ ଗାନ)

ଲବ—ତହୁଁ ଚଳିଗଲେ ବୀର ଶ୍ରୀରାମ ଲକ୍ଷ୍ମଣ
ମୁନି ସଙ୍ଗେ ମିଳିଲେ ସେ ମିଥିଳା ଭୁବନ।

କୁଶ—ସ୍ୱୟମ୍ବର ସଭାରେ ସେ ପ୍ରବେଶ ହୋଇଲେ
ଶିବଧନୁ ଭାଙ୍ଗିବାକୁ ଋଷି ଆଜ୍ଞା ଦେଲେ ।

ଲବ— } ସିଂହ ଯେପରି ହସ୍ତୀକୁ ବନେ ନିରେଖଇ
କୁଶ— } ସେହିମନ୍ତ ଧନୁକୁ ଶ୍ରୀରାମ ଦେଲେ ଦୃଷ୍ଟି ।

ଏକ ଲମ୍ଫେ ଭୂମିତଳୁ ଧନୁ ଉଠାଇଲେ
ଦକ୍ଷିଣ କର୍ଣ୍ଣ ପର୍ଯ୍ୟନ୍ତ ଓଟାରି ଆଣିଲେ ।
ମଧ୍ୟଭାଗୁଁ ଭାଜି ଧନୁ ହେଲା ନବଖଣ୍ଡ
ଥରହର କମ୍ପିଲା ଅବନୀ ନବଖଣ୍ଡ ॥

ଲବ—ଏହିରୂପେ ରାମ ଶିବଧନୁ ଭଗ୍ନକଲେ
ସୀତାଙ୍କୁ ବିବାହ କରି ପୁରେ ବାହୁଡ଼ିଲେ ।

କୁଶ—ମାର୍ଗରେ ପରଶୁରାମ ଗର୍ବ ଚୂର୍ଣ୍ଣ କରି
ପ୍ରବେଶ ହୋଇଲେ ଆସି ଅଯୋଧ୍ୟା ନଗରୀ ॥

ବଶିଷ୍ଠ—ଧନ୍ୟ ଧନ୍ୟ ରାଜକୁମାର ! ଏଇ ଅପୂର୍ବ କାବ୍ୟଗୀତ ଗାଇ ତୁମେ ଦୁହେଁ ଏ ଅଯୋଧ୍ୟା ରାଜସଭାକୁ କୃତାର୍ଥ କରିଚ ।

ରାମ—ମୋର କୀର୍ତ୍ତି—ମୋର କାହାଣୀ—ମୋର ରାଜସଭାରେ ଗାନ କରି ତୁମେ ଦୁହେଁ ମତେ ଶୁଣାଉଛ ବାଳକ ! ଏଇ ପବିତ୍ର ରଘୁବଂଶର କାହାଣୀ ଶୁଣୁ ଶୁଣୁ ମୋ ନିଜକୁ ମୁଁ ଭୁଲିଯାଉଚି । କୁଳଗୁରୁ ବଶିଷ୍ଠ ଠିକ୍ କହିଚନ୍ତି—ତୁମ ଦୁହିଁଙ୍କ ଯୋଗୁ ଏ ରାଜସଭା କୃତାର୍ଥ ହୋଇଚି ।···ହଁ ବାଳକ, ତମର ପରିଚୟ ତ ଆମେ ପାଇଲୁ ନାହିଁ !

ଲବ—ଆଶ୍ରମବାସୀ ଦୁଇଜଣ ବାଳକ ଆମେ—ଏଇ ଆମର ପରିଚୟ ।

ରାମ—ଏତିକି ? ଆଉ କିଛି ନାହିଁ ?

କୁଶ—ଆମର ସବୁଠୁଁ ବଡ଼ ପରିଚୟ ହେଉଚି—ଆମେ ମହର୍ଷି ବାଲ୍ମୀକଙ୍କର ଶିଷ୍ୟ ।

ରାମ—(ଦୀର୍ଘଶ୍ୱାସ) ହୁଁ···ମହର୍ଷି ବାଲ୍ମୀକି ଆଶ୍ରମକୁ ଫେରି ଯାଇଚନ୍ତି । ତୁମ ଦୁହିଁଙ୍କର କିଛି ଅସୁବିଧା ହେଉନାହିଁ ତ ?

ଲବ—ନା ମହାରାଜ !

କୁଶ—ଆଜି କଣ ଆଉ ନୂଆ ସର୍ଗ ଆରମ୍ଭ କରିବୁ ?

ରାମ—ନା, ନା, ଆଜ ଏତିକରେ ବନ୍ଦ ରହୁ । ମୋ ମନପ୍ରାଣରେ ତୁମେ ଦୁହେଁ ଯୋଉ ଆନନ୍ଦର ଲହରୀ ଖେଳାଇ ଦେଇଚ, ତାକୁ ମୁଁ ଗୋଟିଏ ଦିନରେ ଶେଷ କରିଦେବାକୁ ଚାହେଁନା । ପରେ ପୁଣି ମୁଁ ତମର ରାମାୟଣ ଗାନ ଶୁଣିବି ।

ଲବ—ଆଜ ତେବେ ଆମକୁ ବିଦାୟ ଦିଅନ୍ତୁ ।

ରାମ—ବିଦାୟ···ହଁ, ଭରତ !

ଭରତ—ପ୍ରଭୁ !

ରାମ—ଯାଅ ଭାଇ, କୁମାର ଦୁହିଁଙ୍କୁ ତାଙ୍କ କୁଟୀରରେ ପହଞ୍ଚାଇ ଦିଅ ।

ଭରତ—ଆସ ଲବକୁଶ ।

[ରାଜଉଦ୍ୟାନ । ରାମଚନ୍ଦ୍ର ଏକାକୀ]

ରାମ—(ସ୍ୱଗତ) ଲବକୁଶ ! କିଏ ଏଇ ଲବକୁଶ ? ଦିନ ପରେ ଦିନ ରାମାୟଣ ଗାନ କରିଯାଉଛନ୍ତି । ସବୁ ମୋର କଥା—ମୋର ସୁଖଦୁଃଖର କାହାଣୀ । ଜନ୍ମ—ଚଉଦବର୍ଷ ବନବାସ—ସୀତାହରଣ—ଲଙ୍କା ଦହନ – ରାବଣ ବଧ—ସବୁ—ସବୁ କାହାଣୀ ସେ ଦୁହିଁଙ୍କ ସୁଲଳିତ କଣ୍ଠସ୍ୱରରେ ଭାସି ଆସି ମତେ ମୋହାଚ୍ଛନ୍ନ କରିରଖୁଚି । ଯେତେ ମୁଁ ଶୁଣୁଛି, ସେହି ଦୁହିଁଙ୍କ ନିକଟକୁ ସେତିକି ଟାଣିହୋଇଯାଉଚି । ··ଶୁଣିଲି, ଆଜ ଏଇ ଉଦ୍ୟାନ ସେ ପାଖ ଅଶ୍ୱତ୍ଥ ବୃକ୍ଷ ତଳେ ବସି ରାମାୟଣ ଗାନ

କରିବେ । ଏଇ ଉଦ୍ୟାନରେ ବସି ମୁଁ ସେମାନଙ୍କ ଗାନ ଶୁଣିବ ।

( ରାମାୟଣ ଗାନ )

ଲବ—
କୁଶ— } ଶୁଣ ଏବେ ବୁଧଜନେ ମନ କର୍ଣ୍ଣ ଦେଇ
ଅନଳ ପରୀକ୍ଷା ଦେବେ ସତୀ ବଇଦେହୀ ।
ଶ୍ରୀରାମଙ୍କୁ ପ୍ରଦକ୍ଷିଣ କରି ସେ ବଦନ
କରଯୋଡ଼ି ଅଗ୍ନିକୁଣ୍ଡ କଲେ ପ୍ରଦକ୍ଷିଣ ।
ବୋଇଲେ ହେ ଅଗ୍ନିଦେବ ମୋ ଉକତି ଶୁଣ
ଅସତୀ ଯଦି ମୋ' ପିଣ୍ଡ କର ତୁ ଦହନ ।
ଏତେ ବୋଲି ସତୀ ଅଗ୍ନି ଭିତରେ ପଶିଲେ
ନିମିଷକେ କୁଣ୍ଡ ମଧ୍ୟେ ଅଦୃଶ୍ୟ ହୋଇଲେ ।

ରାମ— (ସ୍ୱଗତ) ଅଃ—ସେ ଦିନର ସେଇ କରୁଣ ଦୃଶ୍ୟ ଆଜ ପୁଣି ଥରେ ମୋ ଆଖି ଆଗରେ ଭାସିଉଠୁଚି ।

(ରାମାୟଣ ଗାନ)

ଲବ—ନିରେଖି ଏ ଦୃଶ୍ୟ ରାମ ହୁଅନ୍ତି ଆକୁଳ
ବେନି ନୟନରେ ପୂର୍ଣ୍ଣ ହେଲା ଅଶ୍ରୁଜଳ ।

କୁଶ—ଦଶଦିଗ ଗୁହ୍ଜି କହୁ ବୁଦ୍ଧି ନ ଦିଶଇ
ବୋଲନ୍ତି ମୁଁ ବୃଥା ନାଶ କଲି ବଇଦେହୀ ।

ଲବ—ନରବାନର ଦାନବ ହାହାକାର କଲେ
ବୋଲନ୍ତି ଶ୍ରୀରାମଚନ୍ଦ୍ର କି କଲେ କି କଲେ ।

ରାମ—(ସ୍ୱଗତ) ନା ! ମୁଁ ପାରୁନି—ମୁଁ ସହିପାରୁନି ଜାନକୀ—ମୁଁ ପାରୁନି ।

(ରାମାୟଣ)

ଲବ }
କୁଶ } —ଏସମୟେ ସୀତାଙ୍କୁ ଯେମନ୍ତ ବୈଶ୍ୱାନର
କୋଳେଧରି ସମର୍ପିଲେ ଶ୍ରୀରାମ ଛାମୁର ।
ବୋଲନ୍ତି ହେ ରାମ ତୁମ୍ଭ ସୀତାଙ୍କୁ ନିଅ
ନିର୍ଦ୍ଦୋଷ ଅଟନ୍ତି ଏହୁ ଜନକର ଝିଅ ।
ତହୁଁ ରଘୁପତି ସୀତା ସଙ୍ଗେ ମୋଦଭରେ
ବାହୁଡ଼ିଲେ ଅଯୋଧ୍ୟାକୁ ପୁଷ୍ପକ ରଥରେ ।

ରାମ—(ଆଶ୍ୱସ୍ତ) ଆଃ !···ଏ ପୋଡ଼ା ପ୍ରାଣରେ ଲବକୁଶ ଦୁହେଁ
ଯେମିତି ଶୀତଳ ଚନ୍ଦନ ଲେପିଦେଲେ—ଶୀତଳ ଚନ୍ଦନ ।

[କିଛି ଦିନ ପରର ଘଟଣା]

ରାମ—(ମନକୁମନ) କିନ୍ତୁ କିଏ ଏଇ ଲବକୁଶ ? କେମିତି ଏ ଚିନ୍ତା, ଏ ଦହନରୁ ମୁଁ ମୁକ୍ତି ପାଇବି ? ସେମାନଙ୍କୁ ଯେତେ ଦେଖୁଚି, ଯେତେ ସେମାନଙ୍କ ସ୍ୱର ଶୁଣୁଚି, ସେତେ ସେମାନଙ୍କ ନିକଟରେ ମୋ' ନିଜକୁ ମୁଁ ହଜାଇଦେଉଚି !···ଲବକୁଶ—ଯାଆଁଳା ଭାଇ ଆଜି ପୁଣି ରାଜସଭାରେ ସେମାନେ ରାମାୟଣ ଗାନ କରିବେ । ଏ ଦୁଇ ଭାଇଙ୍କୁ ରାଜପୋଷାକ ପିନ୍ଧାଇଦେଲେ ଯେ କେହି କହିବ, ସଭାସ୍ଥଳରେ ଗୋଟିଏ ରାମ ନୁହେଁ ତିନୋଟି ରାମ ଉପସ୍ଥିତ ଅଛନ୍ତି !!···ଯୋଉଠି ଏତେ ସାମଞ୍ଜସ୍ୟ, ଏତେ ଆକର୍ଷଣ—ଏତେ ବିହ୍ୱଳ ବିଚଳିତ ମନର ଭାବ, ସେଠି କାହିଁକି ଏ କଥା ମୁଁ ସ୍ପଷ୍ଟ ଜଣାଇ ଦେବିନାହିଁ ଯେ ଆଶ୍ରମବାସୀ ଏଇ

ଦୁଇଭାଇ ଲବ କୁଶ ଆଜ କେହ୍ବ ନୁହନ୍ତି—ସେ ଦୁହେଁ ମୋର ସନ୍ତାନ—ମୋର ପୁତ୍ର । ତାଙ୍କ ମାତାଙ୍କ ନିର୍ଦ୍ଦେଶ ମାନି ଛଦ୍ମ-ବେଶରେ ମୋ ନିକଟକୁ ଆସିଛନ୍ତି···ସେମାନେ···

(ଭରତ ଆସିଲେ)

ଭରତ—ରଘୁପତି···

ରାମ—(ଚମକି) କିଏ ?··· ଓ, ଭରତ !

ଭରତ—ସଭାସ୍ଥଳକୁ ବିଜେକରନ୍ତୁ । ରାମାୟଣ ଗାନ ପାଇଁ ଲବକୁଶ ଅପେକ୍ଷା କରିଛନ୍ତି ।

ରାମ—ଲବ···ଲବକୁଶ···

ଭରତ—କିଛି କହିବେ ?

ରାମ—ନାଁ···ଚାଲ ।

[ ରାଜସଭା ]

(ରାମାୟଣ ଗାନ)

ଲବ—ରାମ ପ୍ରବେଶ ଅଯୋଧ୍ୟା କଟକ

କୁଶ—ଦେବପୁରୀ ସମ କିବା ଝଟକ ।

ଲବ—ଏବେ ପୂରିଲା ଚଉଦ ବରଷ

କୁଶ—ପୁରବାସୀ ଜଣ ମହାଉଲ୍ଲାସ ।

ଲବ—ସ୍ୱର୍ଣ୍ଣସିଂହାସନ କଲେ ମଣ୍ଡନ

କୁଶ—ରାଜ୍ୟଦଶା ଏବେ ହେଲା ଖଣ୍ଡନ ।

ଲବ—ରାମରାଜ୍ୟେ ରାମ ହେଲେ ପାଳକ

କୁଶ—ସୁଖେ ପାଳିଲେ ସେ ପ୍ରଜା ପାଠକ ॥

( ସଙ୍ଗରେ ଆହା-ହା-ସୁନ୍ଦର ସୁନ୍ଦର
ପ୍ରଭୃତି ଶବ୍ଦର ଗୁଞ୍ଜରଣ )

ଲବ }
କୁଶ } —କାହିଁ ଥିଲା ରଜକମ ସେ

କହେ ସ୍ୱାମୀକୁ ତା'ର

ସୀତା ଯଦ୍ଧ ସତ୍ୟ ହୋଇଲେ

କଦା ଦୋଷ ମୋହର ?

ଚଉଦ ମାସ ସେ ରହିଲେ

ପର ପୁରୁଷ ଘରେ

ଦୋଷୀହେଲ ରାଣ କହିଲା ବୋଲି

ମୋ ବାପ ଘରେ ?

ଏଇ ଜଲୁଗୁଣା ବାଧିଲା

ରଘୁପତିଙ୍କୁ ଘର

ସୀତା ହେବେ ବନବାସିମା

ଆଦେଶିଲେ ହକାର ।

ଲବ—ପାଞ୍ଚ ମାସ ଗର୍ଭ ଧାରଣ

ସତ୍ୟ ଅଯୋଧ୍ୟା ଲକ୍ଷ୍ମୀ

କୁଶ—ସମାଦରେ ତାଙ୍କୁ ପାଳିଲେ

ତପୋବନେ ବାଲ୍ମୀକ ।

ଲବ—ଯଥାକାଳେ ଜାତ ହୋଇଲେ

ଦୁଇ ଯମଜ ସୁତ

କୁଶ—ଯଥାକାଳେ ଶାସ୍ତ୍ର ବିଧି ସେ

ଶିକ୍ଷା କଲେ ବହୁତ ।

ଲବ }
କୁଶ } —ଅଶ୍ୱମେଧ ଯଜ୍ଞ ହେଉଛି
ପରା ଅଯୋଧ୍ୟାପୁରେ

ଶୁଣି ସୀତା ବେନି ନୟନରୁ
ଝାଳି ଲୋତକ ଝରେ ।
ପତ୍ନୀ ତେଜ ବନବାସରେ
ସ୍ୱାମୀ କରନ୍ତି ଯାଗ
ହାଏରେ ଦାରୁଣ ବିଧାତା
ମତେ ଦେଲୁ ଏ ଭୋଗ ।
ଆସିଥିବେ ଯଜ୍ଞ ଦର୍ଶନେ
କେତେ ରାଜକୁମାର
ଯିବେନାହିଁ କିବା ସେଠାକୁ
ମୋର ଦୁଇ କୁମର ।

(କିଛି କ୍ଷଣ ପୂର୍ଣ୍ଣ ନୀରବତା)

ବଶିଷ୍ଠ—ଏତିକି ରାମାୟଣ ଗାନ ହେଲା ପରେ ଏତେ ବଡ଼ ସଭା-ମଣ୍ଡଳୀ କେମିତି ନୀରବ ନିସ୍ପନ୍ଦ ହେଇଗଲା । ଏମିତିକି କାହାର ନିଃଶ୍ୱାସ ସୁଦ୍ଧା ବାରିହଉନି ।

ରାମ—ବନ୍ଦକଲ କାହିଁକି ଲବକୁଶ ?

ଲବ—ବାକି ଯା' ରହିଲା ଅଶ୍ୱମେଧ ଯାଗ ସମାପ୍ତ ହେଲା ପରେ ଗାନକରିବୁ ।

ରାମ—ଏହା କଣ ତମ ଗୁରୁଦେବଙ୍କ ନିର୍ଦ୍ଦେଶ ?

ଲବ—ଅଜ୍ଞା ।

କୁଶ—ଆପଣଙ୍କ ଦୁଇ ଆଖିରୁ ଧାର ଧାର ଲୁହ କାହିଁକି ଗଡ଼ି ଆସୁଛି ମହାରାଜ ?

ରାମ—ଲବ କୁଶ ?

ଲବ—ଆଦେଶ କରନ୍ତୁ ସୀତାପତି !

ରାମ—ତୁମେ ଦୁହେଁ ଆସ ବାବୁ, ମୋ' ପାଖକୁ ଆସ ।

କୁଶ—ଆମେ ତ ଆପଣଙ୍କ ପାଖରେ ଅଛୁ—ଆପଣଙ୍କର ଠିକ୍ ସମ୍ମୁଖରେ !

ରାମ—ନା, ନା, ଆହୁରି ପାଖକୁ···

(ଗୀତ)

ଆସ ବାବୁ ଦୁଇ କୁମର
ଆସ ବାବୁ ମୋର ସିଂହାସନକୁ
ଅତି ଅଭାଜନ ସ୍ନେହକାଙ୍ଗାଳ ମୁଁ
ଆସ ବାରେ ମୋର ଶୂନ୍ୟ କୋଳକୁ । ପଦ ।

ଲବ—ଆପଣଙ୍କ କୋଳରେ ବସିବାପାଇଁ ତ ଆମେ ଉପଯୁକ୍ତ ନୋହୁଁ ମହାରାଜ !

ରାମ—(ଗୀତ) କ୍ଷଣକାଳ ପାଇଁରେ ଧନ
ନୁହେଁ ମୁହିଁ ତୁମ ରାଜନ,
ହଜିଯାଇଥିଲ ମୋ କୋଳରୁ ଯାହା
ପାଇଛି ମୁଁ ଆଜ ସେଇ ଧନକୁ । ୧ ।

ଲବ }
କୁଶ } —ରଘୁପତି ! !

ରାମ—ନା ନା, ମୁଁ ରଘୁପତି ନୁହେଁ । ମୁଁ ପ୍ରଜାନୁରଂଜନ ରାଜା ରାମଚନ୍ଦ୍ର ନୁହେଁ । ମୁ···ମୁଁ···

ଭରତ—ଅନ୍ତଃପୁରରୁ ସମ୍ବାଦ ଆସିଛି ଜ୍ୟେଷ୍ଠଭ୍ରାତ !

ରାମ—କି ସମ୍ବାଦ ଭରତ ?

ଭରତ—ଲବକୁଶ ଦୁହିଁଙ୍କୁ ଅନ୍ତଃପୁରରୁ ଡାକରା ଆସିଚ ।

ରାମ—ଅନ୍ତଃପୁର ! ଲବକୁଶ ଦୁହେଁ ଅନ୍ତଃପୁରକୁ ଯିବେ ?

ବଶିଷ୍ଠ—ନ ଯିବେ କାହିଁକି ? ଆଜିର ରାମାୟଣ ଗାନ ପରେ ଆଉ ବାଧା କଣ ରହିଲା ?

ରାମ—ଆପଣଙ୍କର ଇଙ୍ଗିତ ମୁଁ ବୁଝିଚି କୁଳଗୁରୁ ବଶିଷ୍ଠ ! ମୁ ଅନୁମତି ଦେଲି—ସେମାନେ ଅନ୍ତଃପୁରକୁ ଯା'ନ୍ତୁ ।

ଭରତ—କଞ୍ଚୁକୀ, ଲବକୁଶ ଦୁହିଁଙ୍କୁ ଅନ୍ତଃପୁରକୁ ନେଇଯାଅ ।

[ଲବକୁଶ ଦୁହିଁଙ୍କର ପ୍ରସ୍ଥାନ]

ରାମ—କିନ୍ତୁ କୁଳଗୁରୁ, ଦେବୀ ଜାନକୀ ନିର୍ବାସନରେ ଥିବାପର୍ଯ୍ୟନ୍ତ ଲବକୁଶ ଦୁହିଁଙ୍କୁ ଅଯୋଧ୍ୟାର ରାଜପୁତ୍ର ବୋଲି କିଏ ସ୍ୱୀକାର କରିବ ?

ବଶିଷ୍ଠ—ସେଇ ସୁଯୋଗ ଆଜି ଉପସ୍ଥିତ ରାଜା ! ମହାସତୀ ସୀତା ଚିରଦିନ କଳଙ୍କଶୂନ୍ୟା । ଆପଣ ସୀତାଙ୍କୁ ଆଶ୍ରମରୁ ଫେରାଇ ଆଣନ୍ତୁ । ଏଠି ପିତା ପୁତ୍ର ଓ ମାତାର ମହାମିଳନ ଘଟିବ ।

ରାମ—ଭଲକଥା । ସୀତା ଫେରିଆସନ୍ତୁ । ଫେରିଆସି ଏଇ ରାଜ-ସଭାରେ ସେ ଶପଥ କରି ତାଙ୍କ ସତୀତ୍ୱର ପରିଚୟ ଦିଅନ୍ତୁ ।

ଭରତ—ପୁଣି ଶପଥ ? ପୁଣି ପରୀକ୍ଷା ?

ରାମ—ହଁ ଭରତ । ରାଜଦଣ୍ଡ ହାତରେ ଧରି ଏଇ ରାଜସଭାରେ ମୁଁ ତାଙ୍କୁ ନିର୍ବାସନ ଦଣ୍ଡ ଦେଇଥିଲି । ସେଥିପାଇଁ ପୁଣି ଥରେ ଏଇ ରାଜସଭାରେ ସେ ଶପଥ କରି କୁହନ୍ତୁ—

ଭରତ—କନ୍ତୁ କାହିଁକ ? କାହିଁକ ?

(ଗୀତ)

ଭରତ—ଏ'କ ଶୁଣେ ପୁଣି ସୀତାପତ ମୁଖେ
(ଏ) ଅବଗ୍ଗର କଥା ଉଠେ କାହିଁକ
ସୁବର୍ଣ୍ଣ ଝଲରେ ଝଟକଲ ପରେ
ଆଉ କ ପଗ୍ରୀକ୍ଷା ରହୁଚ ବାକ ? । ପଦ ।
ଅଗ୍ନି ପଗ୍ରୀକ୍ଷାରେ ମାନଲନ ମନ
ଭୋଗିଲେ ପୁଣି ସେ ଦଣ୍ଡ ନର୍ବାସନ
କେଉଁ ଅପଗ୍ରାଧେ ଠିଆ ହେବେ ପୁଣି
ଗ୍ରଜସଭା ତଳେ ଦେଵୀ ଜାନକୀ । ୧ ।

ଗ୍ରମ—ତମେ ନଷ୍ଟପ୍ର ଉତ୍ୟକ୍ତ ହୋଇପଡ଼ିଚ ଭରତ !···ମାନ୍ଧ ମୋର ଏ ଆଦେଶ । ତୁମେ ଲକ୍ଷ୍ମଣ ଓ ବଭୀଷଣ ପ୍ରଭୃତଙ୍କୁ ସାଥିରେ ନେଇ ଯାଅ । ସୀତା ଓ ବାଲ୍ମୀକଙ୍କୁ ନେଇ ଅଯୋଧ୍ୟା ଆସିବ ।

[ ବାଲ୍ମୀକ ତପୋବନ । ଦୁଇଜଣ ଋଷି-
ବାଳକଙ୍କ କଣ୍ଠରୁ ସଙ୍ଗୀତ ଭାସିଆସୁଛ । ]

(ଗୀତ)

ସେପଟେ ଅଯୋଧ୍ୟାପୁରେ ଗ୍ରମାୟଣ ଗାନ
ଏପଟେ ଜାନକୀ ଦଉଚ କେଉଁ ଅଗ୍ରଜନ ।

ପଞ୍ଚବଟୀଠେ ଥିଲା ହେଲେ ସୁବର୍ଣ୍ଣର ସୀତା
ଆଶ୍ରମବାସିନୀ ହେଲେ ଜନକ ଦୁହିତା ।
ଯଥାକାଳେ ଯାଗକର୍ମ ହେବ ସମାପନ
ପୂର୍ଣ୍ଣାହୁତି ପାଇଁ ଦେବୀ କୁହନ୍ତ ଭଜନ ।
ଝୁରି ଝୁରି ବଇଦେହୀ ତନୁ ହୁଏ କ୍ଷୀଣ
ନୟନୁ ଲୋତକ ଝରୁଥାଏ ଅନୁକ୍ଷଣ ।
ଏକାଳେ ଶୁଭିଲା ରଥ ଆଗମନ ଶବ୍ଦ
ଚକିତେ ଗୃହିଁଲେ ଦେବୀ ସମ୍ମୁଖେ ଭରତ ।

ଭରତ—ପ୍ରଣାମ ଗ୍ରହଣ କରନ୍ତୁ ଦେବୀ !

ସୀତା—ଅଯୋଧ୍ୟାପୁରୀର ସମ୍ବାଦ କଣ ଭରତ ?

ଭରତ—ଅଯୋଧ୍ୟାରେ ସମସ୍ତେ ସର୍ବାଙ୍ଗୁଭରେ ଅଛନ୍ତି । ପ୍ରଭୁଙ୍କ ନିର୍ଦ୍ଦେଶରେ ଅଯୋଧ୍ୟାରୁ ରଥ ଆସିଛି । ଦେବୀ ଅଯୋଧ୍ୟା ଯାତ୍ରା କରିବେ ।

ସୀତା—ଓ !…(ବାଲ୍ମୀକି ଆସିଲେ)

ଭରତ—ପ୍ରଣାମ ମହର୍ଷି ।

ବାଲ୍ମୀକି—ରାଜା ରାମଚନ୍ଦ୍ର ରଥ ପଠାଇଛନ୍ତି ?

ଭରତ—ହଁ ମୁନିଶ୍ରେଷ୍ଠ ! ଦେବୀ ଅଯୋଧ୍ୟା ଫେରିଯିବେ । ଅଯୋଧ୍ୟା ରାଜସଭାରେ ପୁଣି ଶପଥ କରି…

ବାଲ୍ମୀକି—ମୁଁ ଜାଣିଥିଲି—ଜାଣିଥିଲି ଭରତ, ରଘୁପତି ଜାନକୀଙ୍କୁ ଦିନେ ଫେରାଇ ନେବେ । ତା' ନହୋଇଥିଲେ ଲବକୁଶଙ୍କୁ ଅଯୋଧ୍ୟାରେ ଛାଡ଼ି ଆସିନଥାନ୍ତି ।

ଭରତ—ଦେବୀଙ୍କ ସହିତ ଆପଣ ମଧ୍ୟ ଅଯୋଧ୍ୟା ଯାତ୍ରା କରିବେ ।

ବାଲ୍ମୀକ—ଯିବ ଭରତ, ମୁଁ ମଧ୍ୟ ତୁମମାନଙ୍କ ସହିତ ଯିବି । ସେଠି ରାଜସଭାରେ ମୋର ସମସ୍ତ କଥା ରାମଚନ୍ଦ୍ରଙ୍କୁ ଜଣାଇବି । କିନ୍ତୁ ରାଜସଭାରେ ମା' ଜାନକୀର ଶପଥ କରିବା କଥା···

ସୀତା—ମୁଁ ତ ଆପଣଙ୍କୁ କହିଚି ପିତା, ଏଥିରେ ମୋର ଭଲେ ହେଲେ ଆପତ୍ତି ନାହିଁ । ଥରେ ଅଗ୍ନିପରୀକ୍ଷା ଦେଇଛି । ପ୍ରଭୁ ଯେବେ ଚାହିଁବେ, ଆଉ ପାଞ୍ଚଥର ପରୀକ୍ଷା ଦେବି । ଯାହାଙ୍କ ଚରଣକମଳ ବିନା ମୋ ଜୀବନର ଗତି ମୁକ୍ତି ନାହିଁ—ମୋର ଧ୍ୟାନଧାରଣା, କାମନା, ବାସନା ସବୁକିଛି ଯାହାଙ୍କ ପାଦପଦ୍ମରେ ନିବେଦିତ, ମୋର ସେଇ ପରମ ଆରାଧ୍ୟ ପତି ଦେବତାଙ୍କୁ ଲୋକନିନ୍ଦାରୁ ରକ୍ଷା କରିବାପାଇଁ ମୁଁ ଅଯୋଧ୍ୟା ରାଜସଭାରେ ଅଗ୍ନିପରୀକ୍ଷାଠୁ ବଳି ଆହୁରି କଠିନ ପରୀକ୍ଷାର ସମ୍ମୁଖୀନ ହେବି । ମୋ ଜୀବନର ଏଇ ଶୁଭମୁହୂର୍ତ୍ତ ପାଇଁ ମୁଁ ଅପେକ୍ଷା କରୁଥିଲି ।

ବାଲ୍ମୀକ—ବର୍ତ୍ତମାନ ତା'ହେଲେ ଅଯୋଧ୍ୟା ଯାତ୍ରା କରିବା ?

ସୀତା—ହଁ, ବର୍ତ୍ତମାନ ।

ଭରତ—ରଥ ପ୍ରସ୍ତୁତ ଦେବୀ—ଆସନ୍ତୁ, ରଥକୁ ଆସନ୍ତୁ ।

ସୀତା—ମୁଁ ଜାଣେ ଭରତ, ତୁମେ ଅତି ବିଜ୍ଞ—ଅତି ଜ୍ଞାନୀ । ଏକଥା ତୁମେ କହୁଛ କିପରି ? ପିତା ବାଲ୍ମୀକ ତ ରଥରେ ଯିବେ ନାହିଁ, ଚାଲି ଚାଲି ଯିବେ—ଆଉ ମୁଁ ଯିବି ରଥରେ ! ! ଚଉଦବର୍ଷ ବନବାସ ଜୀବନ ମୋର ଏଇ ପାଦରେ ଚାଲି ଚାଲି କଟିଚି ।

ଭରତ—କିନ୍ତୁ ଅଯୋଧ୍ୟାର ମହାରାଣୀ ପାଦରେ ଚାଲି ଚାଲି ଅଯୋଧ୍ୟା ନଗରୀକୁ ଫେରିବେ, ଏ ନିର୍ଦ୍ଦେଶ ତ ମୁଁ ପାଇନି ଦେବୀ !

ସୀତା—ନିର୍ଦ୍ଦେଶ ଯେବେ ପାଇନି ଭରତ, ତେବେ ମୋ ନିର୍ଦ୍ଦେଶ ଅଯୋଧ୍ୟାର ମହାରାଣୀ ବର୍ତ୍ତମାନ ଦେଉଛନ୍ତି । ଚାଲ—ଆସନ୍ତୁ ପିତା ।

[ଅଯୋଧ୍ୟା ରାଜସଭା । ଉପସ୍ଥିତ ସୀତା ଓ ବାଲ୍ମୀକି]

ବାଲ୍ମୀକି—ମହାନ୍ ସୂର୍ଯ୍ୟବଂଶର ଏ ଅଯୋଧ୍ୟା ରାଜସଭା । ପରିପୂର୍ଣ୍ଣ ସଭାଗୃହରେ ସମସ୍ତେ ଦେବୀ ଜାନକୀଙ୍କ ବିଚାର ଅପେକ୍ଷାରେ ରହିଛନ୍ତି ।···ମୋର ସମ୍ମୁଖରେ ପ୍ରଜାନୁରଂଜନ ପ୍ରଜାବତ୍ସଳ ରାଜା ରାମଚନ୍ଦ୍ର । ଗୋଟିଏ ପାର୍ଶ୍ୱରେ ଇକ୍ଷ୍ୱାକୁ ବଂଶର କୁଳଲକ୍ଷ୍ମୀ ସୀତା—ଅନ୍ୟ ପାର୍ଶ୍ୱରେ ମୋର ଦୁଇ ପ୍ରିୟ ଶିଷ୍ୟ ଲବକୁଶ । ଆଉ ମୁଁ···ଅଜୀବନ ଯୋଗ ସାଧକ ତ୍ରିକାଳଦର୍ଶୀ ଋଷି ବାଲ୍ମୀକି ।···ସେଦିନର କଥା । କୁମାର ଲକ୍ଷ୍ମଣ ନେଇ ସୀତାଙ୍କୁ ମୋ ଆଶ୍ରମରେ ଛାଡ଼ିଦେଇ ଆସିଲେ । ମୋର ଦିବ୍ୟଜ୍ଞାନ, ଦିବ୍ୟ ଦୃଷ୍ଟି ବଳରେ ମୁଁ ଜାଣିପାରିଲି ସୀତା କଳଙ୍କଶୂନ୍ୟା—ସେ ସନ୍ତାନସମ୍ଭବା । ସେହି ମୁହୂର୍ତ୍ତରେ ଅଯୋଧ୍ୟାର କୁଳଲକ୍ଷ୍ମୀ ଏହି ମହାସତୀ ସୀତାଙ୍କୁ ମୁଁ ମୋର କନ୍ୟାରୂପେ ଗ୍ରହଣ କଲି । ଜନ୍ମ ନେଲେ

ରାଜା ରାମଚନ୍ଦ୍ରଙ୍କ ଔରସଜାତ ଏଇ ଯମଜ ସନ୍ତାନ ଲବକୁଶ । ବର୍ତ୍ତମାନ ମୁଁ ପରମବ୍ରହ୍ମ ପରମେଶ୍ୱରଙ୍କ ନାମ ସ୍ମରଣକରି ଅନୁରୋଧ କରୁଛି, ରଘୁପତି ତାଙ୍କ ପରମା ସତୀ ସ୍ତ୍ରୀ ଓ ତାଙ୍କ ଦୁଇ ପୁତ୍ରଙ୍କୁ ଏ ସଭାଗୃହରେ ଗ୍ରହଣ କରନ୍ତୁ । ସଭାସ୍ଥଳୀ ଆନନ୍ଦ ଉଲ୍ଲାସରେ ଉଚ୍ଛୁଳିଉଠୁ ।

ରାମ—ମୁଁ ସ୍ୱୀକାର କରୁଛି, ମହର୍ଷି ବାଲ୍ମୀକଙ୍କ କଥା ଅନ୍ୟଥା ହେବାର ନୁହେଁ । ରାଜଧର୍ମ ରକ୍ଷା କରିବାପାଇଁ ମୁଁ କେବଳ ଏତିକ କହୁଛି, ମହର୍ଷି ଯାହା ଯାହା ଏଠି କହିଗଲେ, ସେ ସବୁ ସତ ବୋଲି ଦେବୀ ଜାନକୀ ଏଇ ସଭାରେ ଶପଥ କରନ୍ତୁ । ତା'ହେଲେ ଅଯୋଧ୍ୟାବାସୀଙ୍କ ମନରେ ଆଉ କିଛି ସନ୍ଦେହ ରହିବ ନାହିଁ ।

ଭରତ—ଆପଣଙ୍କ ଆଦେଶ ଫେରେଇ ନିଅନ୍ତୁ ଭ୍ରାତୃଦେବ । ମହର୍ଷି ବାଲ୍ମୀକଙ୍କ ଘୋଷଣା ପରେ ଆଉ ଦେବୀଙ୍କର ଶପଥର ପ୍ରୟୋଜନ ନାହିଁ ।

ସୀତା—ଅଛି । ଅଯୋଧ୍ୟା ରାଜସିଂହାସନର ଆଦେଶକୁ ଅମାନ୍ୟ କରିବାର ଅଧିକାର କାହାର ନାହିଁ । ଏଠି ଉପସ୍ଥିତ ମୋର ସ୍ୱାମୀ, ସନ୍ତାନ ଓ ମୋର ପିତୃପ୍ରତିମ ଗୁରୁଦେବ···ପବିତ୍ର ରଘୁବଂଶର ପୁଣ୍ୟଶ୍ଳୋକ ନରପତିମାନଙ୍କ ପାଦପଦ୍ମକୁ ସ୍ମରଣ କରି ମୁଁ ଶପଥ କରି କହୁଛି—ଏଠି ମହର୍ଷି ବାଲ୍ମୀକ ଯାହା କହିଗଲେ ସେସବୁ ସତ୍ୟ । (କାନ୍ଦୁଥାନ୍ତି)

ସ୍ୱର—ମୁଁ ଜଣେ ଅଯୋଧ୍ୟାବାସୀ ପ୍ରଜା । ଯୋଡ଼ହସ୍ତରେ ମୁଁ ଅଯୋଧ୍ୟାର ମହାରାଣୀଙ୍କୁ ପୁଚ୍ଛା କରୁଛି—ଏହା ସତ କି ମିଛ ଜାଣିବା ପାଇଁ ମହାରାଣୀ କି ପରୀକ୍ଷା ଦେବେ ?

ସୀତା—ପରୀକ୍ଷା ?

(ଗୀତ)

ସବୁ ପରୀକ୍ଷାକୁ ପଛରେ ପକାଇ
କରୁଛି ଶପଥ ମୁହିଁ,
ଧର୍ମ ସତ୍ୟ ଏଇ ରାଜସଭାତଳେ
ମୋ ଅଯୋଧ୍ୟା ମାଟି ଛୁଇଁ ।
ଶୋଭୁଥାଏ ଯଦି ମୋର ଏ କପାଳେ
ସତୀସୀମନ୍ତ ଟିକା
ମୋ ପତିଙ୍କ ସଙ୍ଗେ ହେଉ ଆଜ ଏଠି
ଏଇ ମୋର ଶେଷ ଦେଖା ।

ରାମ—(ଖୁବ୍ ବିଚଳିତ) ଦେବୀ ! !

ସୀତା—ହଁ, ମୋର କଥା ଯଦି ସତ୍ୟ ହୋଇଥାଏ—ମୋ ଶିରା ପ୍ରଶିରାରେ ଯଦି ପତିବ୍ରତା ସତୀ ନାରୀର ରକ୍ତ ପ୍ରବାହିତ ହେଉ-ଥାଏ, ତେବେ ମୋର ପତିଦେବତାଙ୍କ ସହିତ ଆଜ ଏଇ ମୋର ଶେଷଦେଖା ।

ଭରତ—ନା, ନା, ମାତା ଜାନକୀ !

ସୀତା—ମୁଁ ପୁଣି ଶପଥ କରି କହୁଛି, ମୋର ସ୍ୱାମୀ ଏଇ ପରମ ପୁରୁଷ ରାଜୀବଲୋଚନ ରଘୁପତିଙ୍କ ଭିନ୍ନ ଅନ୍ୟ କେଉଁ ପୁରୁଷର କଥା ମୋ ଜୀବନରେ ମୁଁ ଚିନ୍ତା ସୁଦ୍ଧା କରିନାହିଁ । ସେଇ ମୋର ସ୍ୱାମୀ—ମୋର ଇହକାଳ ପରକାଳର ଦେବତା । ମୋର ମନ-ପ୍ରାଣ-ଶରୀର କେବଳ ତାଙ୍କରିଠାରେ ସମର୍ପିତ ।

ସ୍ୱର—ଏହାର ପ୍ରମାଣ ?

ସୀତା—ପୁଣି ପ୍ରମାଣ ! ଭଲକଥା । ମୁଁ ପ୍ରମାଣ ଦେବ—କିନ୍ତୁ ଅନ୍ୟ କାହାର ପାଖରେ ନୁହେଁ । ମୁଁ ପ୍ରମାଣ ଦେବ ମୋ' ଜନ୍ମଦାତ୍ରୀ ମା' ବସୁନ୍ଧରାଙ୍କ ପାଖରେ । ମୁଁ ଯଦି ସତୀ ହୋଇଥିବ, ତେବେ ସେ ମତେ ଏଠୁ ନେଇ ତା' କୋଳରେ ସ୍ଥାନ ଦେବ ।

ସୀତା—(ଗୀତ) ମାଆ ବସୁନ୍ଧରା,

ମାଆ ବସୁନ୍ଧରା

(ତୁ) ଜଗତ କଷଣ ସହୁ

ଜଗତର ଭାର ସହୁ

ମୋ ଦୁଃଖ ପସରା ଘେନ ଉଭା ମୁଁ ଲୋ ତୋ ଦୁଆରେ

ତୁହି ମୋ ଦୁଃଖ ପାସୋରା

ମାଆ ବସୁନ୍ଧରା । ୧ ।

ତୋ ବକ୍ଷରେ ଜାଳ ଅଗ୍ନି ଦେଲି ମୁଁ ପରୀକ୍ଷା

ସହିଥିଲୁ ତୁହି

ତୋ ଝିଅ ମୁଁ ବନା ଦୋଷେ ହେଲି ବନବାସିତା

କାନ୍ଦିଥିଲୁ ତୁହି

ଆଉ କି ପରୀକ୍ଷା ଦେବି ?

କହୁଭଲ ମାଆ ମୋର ମା' ବସୁନ୍ଧରା । ୨ ।

ସତ୍ୟ ଯେବେ ତୋର କୋଳୁଁ ଜନମିଛି ମୁହିଁ

(ମୁହିଁ) ଯେବେ ସତୀ ସୀତା

ଯେଉଁ କୋଳେ ମତେ ତୁ ଲୋ ଦେଇଛୁ ଜନମ

ସେହି କୋଳକୁ ତୁ

ଫେରାଇ ନେ' ଲୋ ମୋତେ ମାଆ ବସୁନ୍ଧରା । ୩ ।

[ ଧରଣୀ ଦୁଇଭାଗ ହୋଇଗଲା ଓ ତନ୍ମଧ୍ୟରେ ସୀତା ଅନ୍ତର୍ହିତା ହୋଇଗଲେ । ]

ବହୁସ୍ୱର—ଏ କଣ ହେଲ୍···ଏ କଣ ହେଲ !!

ବଶିଷ୍ଠ—ଏ' କ ଅଦ୍ଭୁତ ଅଲୌକିକ କଥା ! ଆଖି ପିଛୁଳାକେ ଦେବୀଙ୍କ ପାଦତଳ ଧରଣୀ ଦୁଇଫାଳ ହୋଇଗଲ ଆଉ ଦେବୀ ଅନ୍ତର୍ହିତା ହୋଇଗଲେ !

ଲବ—ମା, ତୁମେ କୁଆଡ଼େ ଗଲ ମା' ?

କୁଶ—ଆମକୁ ଏଠି ଛାଡ଼ ଯାଅନାହିଁ ମା' ! ତୁମ ସାଥିରେ ଆମକୁ ନେଇ ଯାଅ ।

ଭରତ—କଣ ଆଜ ଦେଖୁଛନ୍ତ ଜ୍ୟେଷ୍ଠ ଭ୍ରାତ ? ଆଉ କ ପରୀକ୍ଷା କରିବେ ? କୁହନ୍ତୁ, ଆଉ କ ପରୀକ୍ଷା କରିବେ ?···ଏଣେ ଦେଖନ୍ତୁ, ସୀତା ନାହାନ୍ତି ବୋଲି ତାଙ୍କ ସ୍ୱର୍ଣ୍ଣ ପ୍ରତିମା କପର ମଉଳିଗଲଣି ।

ରାମ—ନା, ନା—ନା ! ମତେ ଛାଡ଼ି ଜାନକୀ ମୋର ଯାଇ ପାରିବେ ନାହିଁ । ଫେରିଆସ—ଫେରିଆସ ଦେବୀ । ତମର ଏଇ ମୂଢ଼ ଅକଞ୍ଚନ ସ୍ୱାମୀର ଆକୁଳ ଆହ୍ୱାନ ରକ୍ଷାକର ତମେ ଫେରି ଆସ ।···ମାତା ବସୁନ୍ଧରୀ, ସୀତାଙ୍କ ଜନନୀ ତୁମେ—ମୋର ପୂଜନୀୟା । ତୁମ ଚରଣ ବନ୍ଦନା କରି ମୁଁ ପ୍ରାର୍ଥନା କରୁଛି— ମୋର ସୀତାଙ୍କୁ ମୋତେ ଫେରାଇଦଅ । ଅଯୋଧ୍ୟାର ରାଜା ମୁଁ··· ରାବଣ ଅରୀ ରଘୁବୀର ରାମଚନ୍ଦ୍ର— କୋଟି ପ୍ରଜାର ରକ୍ଷକ—ମୁଁ ଜାନୁପାତି କୃତାଞ୍ଜଳିପୂର୍ବରେ ନିବେଦନ କରୁଛି —ମୋ ସୀତାଙ୍କୁ ମତେ ଫେରାଇ ଦଅ—ଫେରାଇ ଦଅ । ( କିଛିକ୍ଷଣ ନୀରବତା )··· ଫେରାଇ ଦେବ ନାହିଁ ତେବେ ? ମୋ' ନିବେଦନ ରକ୍ଷା କରିବ ନାହିଁ ? ମୁଁ ଶାନ୍ତ ସରଳ ଶିଶୁଟି ପରି ତମର ଦୟା ଭିକ୍ଷାକଲି ବୋଲି ମୋ'-ପ୍ରତି ତମର

ଏଇ ଅବହେଳା ! ! ତମେ ତା'ହେଲେ ମୋର ସେଇ ତ୍ରିଭୁବନ ଧ୍ୱଂସକାରୀ—ସେଇ ପ୍ରଳୟଙ୍କର ରୂପ ଦେଖିବାକୁ ଚାହଁ ?

ବାଲ୍ମୀକ—ଆର୍ଯ୍ୟ···ଆର୍ଯ୍ୟ ରାମଚନ୍ଦ୍ର !

ରାମ—ଶୁଣ ବସୁନ୍ଧରା ! ମୁଁ ଆଦେଶ କରୁଛି, ଏହି ମୁହୂର୍ତ୍ତରେ ତୁମେ ସୀତାଙ୍କୁ ଫେରାଇଦିଅ । ତା ନହେଲେ ତମର ଯୋଉ ବକ୍ଷରେ ତମେ ସୀତାଙ୍କୁ ଆଶ୍ରୟ ଦେଇଛ···

ବାଲ୍ମୀକ—ନା—ନା—

ରାମ—ତମର ସେଇ ବକ୍ଷକୁ ମୋର ଏ ଶର ମୁନରେ ବିଦୀର୍ଣ୍ଣ କରି···

ବାଲ୍ମୀକ—( ଶାନ୍ତ ଗଳାରେ ) କ୍ରୋଧ ସମ୍ବରଣ କର ରଘୁପତି ।

ରାମ—ନା,···ମୁଁ···ମୁଁ···

ବାଲ୍ମୀକ—ଶାନ୍ତ ହୁଅ । ନିଜର ଦିବ୍ୟଜ୍ଞାନ ବଳରେ ତମର ସେଇ କାନ୍ତ କୋମଳ ମର୍ଯ୍ୟାଦାପୁରୁଷ ରୂପ ପ୍ରକାଶ କର । ଯାହା ବିଧିନିର୍ଦ୍ଦେଶ; ତାକୁ ଏଡ଼ାଇବ କିଏ ?

ରାମ—ବିଧିନିର୍ଦ୍ଦେଶ !

ବାଲ୍ମୀକ—ଶ୍ରୀରାମ ଘରଣୀ ସୀତା ହେଉଛନ୍ତି ବିଷ୍ଣୁପ୍ରିୟା ଲକ୍ଷ୍ମୀଙ୍କ ପ୍ରତିକାୟା—ଗୋଲୋକ ଛାଡ଼ି ମର୍ତ୍ତ୍ୟପୁରୀକୁ ଆସିଥିଲେ । ମର୍ତ୍ତ୍ୟର ଲୀଳା ଶେଷକରି ପାତାଳପୁର ବାସିନୀ ହେଲେଣି । ତୁମେ ଇହଲୋକରେ ତୁମ କର୍ତ୍ତବ୍ୟ ସମାପନ କଲା ପରେ ପୁଣି ଗୋଲୋକ ଧାମରେ ତୁମ ସହିତ ମିଳିତ ହେବେ । ଏଠି ଆଉ

ତୁମେ ତାଙ୍କୁ ପାଇବ ନାହିଁ । ଚାଲ, ସବୁ ଦୁଃଖ ଭୁଲି ଯଜ୍ଞ ସମାପ୍ତ କର ।

ରାମ—କିନ୍ତୁ ଯଜ୍ଞ ସମାପ୍ତ ହେବ କେମିତି ମହାମୁନି ? କୁଳଗୁରୁ କହୁଥିଲେ ଯଜ୍ଞର ଶେଷ ଆହୁତି ଜାନକୀ ନିଜ ହାତରେ ଦେଇ-ଥା'ନ୍ତେ !

ବାଲ୍ମୀକ—ମୁଁ ତ କହୁଚି, ବିଧିର ବିଧାନକୁ କେହୁ ଏଡ଼ାଇ ଦେଇ ପାରିବେ ନାହିଁ । ସୀତା ଆଶ୍ରମବାସିନୀ ଥିଲାବେଳେ ଯଜ୍ଞ ଆରମ୍ଭ ହୋଇଥିଲା । ସେ ପାତାଳପୁରବାସିନୀ ହେଲେଣି—ଯଜ୍ଞ ଶେଷ ହେବ...ତା' ନହେଲେ ରାମାୟଣ ଗ୍ରନ୍ଥ ସମାପ୍ତ ହେବ କିପରି ? ଲବକୁଶଙ୍କର ଯେଉଁ ରାମାୟଣ ଗାନ ଯୋଗୁଁ ଏତେ ଏତେ ଘଟଣା ଘଟିଗଲା, ଯଜ୍ଞ ଶେଷ ନହେଲେ ତା'ର ଶେଷସର୍ଗ ମୁଁ ଲେଖିବ କେମିତି ? ଆସ, ସମସ୍ତେ ଯଜ୍ଞପୀଠକୁ ଆସ ।

[ ଯଜ୍ଞପୀଠରେ ମନ୍ତ୍ର ପାଠ ଓ ବନ୍ଦନା ବାଦ୍ୟ ଧ୍ୱନି ଆରମ୍ଭହେଲା । ]

(ରାମାୟଣ ଗାନ)

ଯଜ୍ଞ କୁଣ୍ଡେ ଜଳେ ଦେଖ
ହୁତୁ ହୁତୁ ଅନଳ
ଚହଟେ ମଧୁର ବାସ
ଦଶଦିଗ ଉଜ୍ଜଳ । ୧ ।

ବେଦୀପରେ ଉଭା ଆହା
ଯୋଡ଼ହସ୍ତେ ଶ୍ରୀରାମ
ଆଖିରେ ଲେତକ, ମାତ୍ର
ଶାନ୍ତ ପ୍ରଭୁ ବଦନ । ୨ ।

ଦୁଇ ପାଶେ ଲବ କୁଶ,
ଦୁଇ ରାଜକୁମାର
ମାତୃହରା ଲଭିଛନ୍ତି
ପିତୃସ୍ନେହ ଅପାର । ୩ ।

ଯଜ୍ଞରେ ଶେଷ ଆହୁତି
ଦେଲେ ରଘୁନନ୍ଦନ
ଏ ସର୍ଗ ହେଲା ସମାପ୍ତ
ବନ୍ଦେ ରାମ ଚରଣ । ୪ ।

---